# ସଂସ୍କାରକ
# ଶଶିଭୂଷଣ





ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଭୁବନେଶ୍ୱର

# ସଂସ୍କାରକ ଶଶିଭୂଷଣ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା

ଜନଶିକ୍ଷା ଭବନ, ୟୁନିଟ୍-୫
ଭୁବନେଶ୍ୱର – ୭୫୧୦୦୧

ସଂସ୍କାରକ ଶଶିଭୂଷଣ
ଲେଖକ : ଡକ୍ଟର ବନମାଳୀ ବାରିକ

ପ୍ରଥମ ପ୍ରକାଶ : ୨୦୦୧

ପ୍ରକାଶକ : ଶ୍ରୀ ଭୁବନାନନ୍ଦ ତ୍ରିପାଠୀ , ନିର୍ଦ୍ଦେଶକ
ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଜନଶିକ୍ଷା ଭବନ, ୟୁନିଟ୍-୫, ଭୁବନେଶ୍ୱର-୭୫୧୦୦୧

ମୁଦ୍ରଣ ସଂଖ୍ୟା : ୨୦୦୦

ପ୍ରକାଶନ ସଂଖ୍ୟା – ଏସ୍.ଆର.ସି. – ୩୦୬–୭/୨୦୦୧-୨୦୦୨

ମୁଦ୍ରଣ : ଜଗନ୍ନାଥ ପ୍ରୋସେସ୍ ପ୍ରା. ଲି଼, ଡଗରପଡ଼ା, କଟକ-୨

ମୂଲ୍ୟ : ଟ. ୩.୦୦

SANSKARAKA SHASHIBHUSANA

Writer Dr. Banamali Barik

1st Edition : 2001

Published by : Sri Bhubanananda Tripathy, Director,
State Resource Centre for Adult Education, Orissa
Janasiksha Bhawan, Unit-5,
Bhubaneswar - 751001

No. of Copies 2000

Publication No. : SRC – 306–7/2001-2002

Printed at : **Jagannath Process Pvt. Ltd.**, Dagarapara, Cuttack-2

Price : Rs. 3.00

## ମଣିଷ ରକ୍ତ ପିଇବି

"ମୋତେ ରକ୍ତ ଦିଅ । ମଣିଷ ରକ୍ତ । ମୁଁ ଜୀବଜନ୍ତୁ ରକ୍ତ ପିଇବି ନାହିଁ । ମୁଁ ମଣିଷ ରକ୍ତ ପିଇବି । ଯିଏ ମୋତେ ପଶୁ ରକ୍ତ ଦେବ ମୁଁ ତାକୁ କଂଚା ଖାଇଯିବି ।"

ସେଦିନ ଶଶିଭୂଷଣଙ୍କ ହାତରେ ଥିଲା ଝାଡୁ ମୁଠା । ଆଉ ସେ ଦେବୀଙ୍କ ଆଗରେ ଏହିପରି ଡାକ ପକାଉଥିଲେ । ଦେବୀ ତାଙ୍କ ଉପରେ ଉଭା ହୋଇଛନ୍ତି – ଏହା ଜାଣି ସମସ୍ତେ ଛାନିଆ ହୋଇଗଲେ ।

ଘଟଣାଟି ଏହିପରି । ସୋରଡ଼ାର କନ୍ଧୁଣୀ ଦେବୀ ମନ୍ଦିର । ପ୍ରତିବର୍ଷ ଚୈତ୍ରମାସରେ ସେଠାରେ କଣ୍ଟାପିଢ଼ା ଉତ୍ସବ ପାଳିତ ହୁଏ । ଦେବୀ ଜଣେ ଲୋକ ଉପରେ ସବାର ହୁଅନ୍ତି । ସେ ଫୁଲ ଚନ୍ଦନ ସିନ୍ଦୂର ମଣ୍ଡି ହୋଇ କଣ୍ଟା ବେଦୀରେ ବସେ । ଭକ୍ତମାନଙ୍କୁ ପଶୁ ପକ୍ଷୀଙ୍କ ରକ୍ତ ମାଗେ । ମାନସିକ ଅନୁସାରେ ଲୋକମାନେ ବଳି ଦିଅନ୍ତି । ଶଶିଭୂଷଣଙ୍କ ଘର



ସୋରଡ଼ାରେ । କେତେ ବର୍ଷ ଏହିଭଳି ଉତ୍ସବ ଦେଖିବା ପରେ ବଳି ପ୍ରତି ତାଙ୍କର ଘୃଣା ଜାତ ହୋଇଥିଲା । ତେଣୁ ଏହା କିପରି ବନ୍ଦ ହେବ ସେଥିପାଇଁ ଉପାୟ ଖୋଜୁଥିଲେ । ଦିନେ ତାଙ୍କୁ ଗୋଟିଏ ବୁଦ୍ଧି ଦେଖାଗଲା । କାଳିଶି ପରି ସେ ଯଦି ଅଭିନୟ କରି ପାରନ୍ତି- ହୁଏତ ଲୋକ ବିଶ୍ୱାସ କରିବେ । ସେଇଆ ହେଲା । ଲୋକେ ତାଙ୍କୁ କାଳିଶି ଲାଗିଚି ଭାବିଲେ । ପଶୁରକ୍ତ ପିଇବା ପାଇଁ ଦେବୀ ରାଜି ନାହାନ୍ତି ଜାଣି ଭକ୍ତମାନେ ଫେରିଗଲେ । କନ୍ଧୁଣୀ ଦେବୀଙ୍କ ଠାରେ ବଳି ବନ୍ଦ ହେଲା ।

ପିଲାଦିନେ ଏଭଳି କାମ କରି ଯିଏ ଲୋକମାନଙ୍କ ଆଖି ଖୋଲି ଦେଇଥିଲେ- ସିଏ ହେଉଛନ୍ତି ଶଶିଭୂଷଣ ରଥ ।

## ପିଲାଦିନ ଓ ବିବାହ

ଗଞ୍ଜାମ ଜିଲ୍ଲାର ସୋରଡ଼ାଠାରେ ତାଙ୍କର ଜନ୍ମ ୧୮୮୪ ମସିହା ଜାନୁଆରୀ ମାସ ୧ ତାରିଖରେ । ବାପାଙ୍କ ନାଆଁ ଲମ୍ବୋଦର ମହାପାତ୍ର । ତାଙ୍କର ସାତପୁଅ ଓ ଗୋଟିଏ ଝିଅ । ଶଶିଭୂଷଣ ଥିଲେ ଦ୍ୱିତୀୟ । ସେ ମାଆଙ୍କ ଗର୍ଭରେ ଥିବାବେଳେ ପିଉସୀ ଘରକୁ ପୋଷା ପୁଅ ହୋଇଥିଲେ । ପିଉସା ଦିଗମ୍ବର ରଥଙ୍କର ପିଲାପିଲି ନଥିଲେ । ତେଣୁ ଶଶିଭୂଷଣ ଜନ୍ମରୁ ମହାପାତ୍ର ନହୋଇ ରଥ ହେଲେ ।

ସୋରଡ଼ା ଗାଁ ଚାଟଶାଳୀରେ ଶଶିଭୂଷଣଙ୍କ ପଢ଼ା ସରିଲା । ଦିଗମ୍ବର ରଥ ତାଙ୍କୁ ରସୁଲକୋଣ୍ଡାରେ ପଢ଼ାଇବାର ବ୍ୟବସ୍ଥା କଲେ । ସେ କିନ୍ତୁ ଜନ୍ମ ଗାଁ ସୋରଡ଼ାକୁ ଭୁଲି ପାରୁ ନଥିଲେ । ତେଣୁ ରସୁଲ-କୋଣ୍ଡାରୁ ସୋରଡ଼ା ଯିବା ଆସିବା ଲାଗି ରହିଲା । ଏଥିରେ ପଢ଼ା ପଢ଼ି

ଠିକ୍ ଭାବେ ହୋଇପାରିଲା ନାହିଁ । ଦିଗମ୍ବର ବାବୁ ପିଲାର ଭବିଷ୍ୟତ ପାଇଁ ଖୁବ୍ ବ୍ୟସ୍ତ ହୋଇ ପଡ଼ିଲେ । ଶେଷରେ ସ୍ଥିର ହେଲା ଶଶି ଭୂଷଣ ପାରଳାଖେମୁଣ୍ଡିରେ ପଢ଼ିବେ । ସେଠାରେ ତାଙ୍କର ମ୍ୟାଟ୍ରିକ୍ ପଢ଼ା ସରିଲା - ୧୯୦୨ ମସିହାରେ । ବାଲ୍ୟ ବିବାହ ପ୍ରଥା ଅନୁସାରେ ସେ ୧୯୦୩ରେ ବାହାହେଲେ ବରଗଡ଼ରେ । କିଛିଦିନ ପରେ ବାପ ଘରେ ଝିଅଟି ମରିଗଲା । ଶଶିଭୂଷଣ ତା'ର ସାନ ଭଉଣୀ ଅନ୍ନପୂର୍ଣ୍ଣାକୁ ପୁଣି ବିବାହ କଲେ ।

## ବ୍ରାହ୍ମଣର ଜୋତା ବ୍ୟବସାୟ

ଚାକିରି ପାଇଁ ଶଶିଭୂଷଣଙ୍କ ଆଗ୍ରହ ନଥିଲା । ବ୍ୟବସାୟ କରି କିଛି ରୋଜଗାର କରିବା ଉଦ୍ଦେଶ୍ୟରେ ସେ ବମ୍ବେ ଗଲେ । ସେଠାରେ ଆରମ୍ଭ ହେଲା ଜୋତା ବ୍ୟବସାୟ । କମ୍ପାନୀର ନା ଦେଲେ - 'ରଥ ଆଣ୍ଡ କୋ' । ବ୍ରାହ୍ମଣ ଲୋକର ଜୋତା ବ୍ୟବସାୟ । ଅନେକ ଲୋକ ନାକ ଟେକିଲେ । ସେଥିପ୍ରତି ତାଙ୍କର ଖାତିର ନଥିଲା । ଭଲ ରୋଜଗାର ହେଲା । କମ୍ପାନୀର ନାଁ ବଢ଼ିଲା । ହେଲେ ଭାଗ୍ୟ ସହିଲା ନାହିଁ । ସେ କାମଳ ରୋଗରେ ପୀଡ଼ିତ ହୋଇ ସୋରଡ଼ା ଫେରି ଆସିଲେ । ଏଠାରେ ରୋଗ ଭଲ ହୋଇଗଲା । ସେ ପୁଣି ବମ୍ବେ ଯିବାକୁ ବାହାରିଲେ । କିନ୍ତୁ ଘରେ କେହି ଏ ପ୍ରସ୍ତାବରେ ରାଜି ହେଲେ ନାହିଁ । ବ୍ୟବସାୟରେ ରୋଜଗାର ବଢୁଛି, ଖ୍ୟାତି ବି ବଢୁଛି । ହେଲେ ଶତ୍ରୁତା ମଧ୍ୟ ବଢୁଛି । ଶେଷରେ ସ୍ଥିର ହେଲା- ଦୋକାନକୁ ବିକି ଦିଆଯିବ ।

ବମ୍ବେରୁ ଫେରି ସେ ମଧୁବାବୁଙ୍କ 'ଉତ୍କଳ ଟ୍ୟାନେରୀ'ର ମ୍ୟାନେଜର ହେଲେ । କିଛିକାଳ ରହିଲାପରେ ସେଠାରୁ ବିଦାୟ ନେବାକୁ

ପଡ଼ିଲା । କାରଣ ମଧୁବାବୁ ବ୍ୟବସାୟୀ ନଥିଲେ । କାରଖାନାର ସମ୍ମାନ ତାଙ୍କର ଏକମାତ୍ର ଲକ୍ଷ୍ୟଥିଲା । ଶଶିବାବୁଙ୍କ ଜୋତା ବ୍ୟବସାୟର ଅଭିଜ୍ଞତା କାମରେ ଲାଗିଲା ନାହିଁ । ବାରଂବାର ମ୍ୟାନେଜର ବଦଳାଇବା ଓ କ୍ଷତି ସହିବା ହେତୁ 'ଉତ୍କଳ ଟ୍ୟାନେରୀ' ଶେଷରେ ବନ୍ଦ ହୋଇଗଲା ।

## କଲିକତାରେ ଓଡ଼ିଆଙ୍କ ଟେକ

କଲିକତାରେ ସେତେବେଳେ ଜଣେ ଓଡ଼ିଆଙ୍କର ଗୋଟିଏ ଔଷଧ ଦୋକାନ ଥାଏ । ଶଶିବାବୁ ତା'ର ମ୍ୟାନେଜର ହେଲେ । ସେଠାରେ ଚେରମୂଳରୁ ଏକ ପ୍ରକାର ଔଷଧ ତିଆରି ହେଉଥିଲା । ମେଲେରିଆ ରୋଗର ଏହା ଅବ୍ୟର୍ଥ ଔଷଧ । ଶଶିବାବୁ କିଛିଟଙ୍କା ସେହି ଦୋକାନରେ ଲଗାଇଲେ । ଦୋକାନର ଭଲ ଆୟ ହେଲା ।

ମାତ୍ର ଏତିକିରେ ତାଙ୍କ ମନ ସନ୍ତୁଷ୍ଟ ହେଲା ନାହିଁ । ଗୋପବନ୍ଧୁ ଓ ନୀଳକଣ୍ଠ ଆସି ଓଡ଼ିଆମାନଙ୍କୁ ଏକାଠି କରୁଥିଲେ । ଗୋଦାବରୀଶ ମଧ୍ୟ କଲିକତା ଆସିଲେ । ସେମାନଙ୍କ ଗହଣରେ ଶଶିବାବୁ ଓଡ଼ିଆ ସଂଗଠନ କାର୍ଯ୍ୟରେ ସାମିଲ ହେଲେ । କଲିକତାରେ ଓଡ଼ିଆମାନଙ୍କୁ କେହି ପଚାରୁ ନଥିଲେ । ଚିହ୍ନା ପଡ଼ିଯିବା ଭୟରେ ସମସ୍ତେ ବଙ୍ଗଳାରେ କଥାବାର୍ତ୍ତା କରୁଥିଲେ । କଲିକତାବାସୀ ସେମାନଙ୍କୁ ଥଟ୍ଟାକରି ଡାକୁଥିଲେ 'ଉଡ଼େ' । ମଧୁବାବୁଙ୍କ ପ୍ରେରଣାରେ ଶିକ୍ଷିତ ଓଡ଼ିଆମାନେ ନିଜର ଚିହ୍ନା ପରିଚୟ ଦେଲେ । ସେମାନେ ଗୋଟିଏ ଗୋଟିଏ ପଗଡ଼ି ପିନ୍ଧି ସଭା ସମିତିରେ ଯୋଗଦେଲେ । ଏହି ଘଟଣା କଲିକତାରେ ବେଶ୍ ଚହଳ ପକାଇଥିଲା । ଶଶିଭୂଷଣଙ୍କୁ ଏହି କଥାଟି ବଡ଼ ଭଲ ଲାଗିଲା । ସେ ପଗଡ଼ି ପିନ୍ଧିଲେ ଓ ଜାତୀୟ କାର୍ଯ୍ୟ ପାଇଁ ଅଣ୍ଟା ଭିଡ଼ିଲେ ।

## 'ଆଶା' ପ୍ରକାଶନ

୧୯୧୨ରେ ଶଶିଭୂଷଣ କଲିକତା ଛାଡ଼ିଲେ । ଲକ୍ଷ୍ୟ ବଦଳିଗଲା । ଗଂଜାମରେ ରହି ଓଡ଼ିଶା ଓ ଓଡ଼ିଆମାନଙ୍କ ପାଇଁ କିଛି କାମ କରିବାକୁ ସେ ସ୍ଥିର କଲେ । ବ୍ରହ୍ମପୁର ଗଂଜାମର ବଡ଼ ସହର । ସେତେବେଳେ ଓଡ଼ିଆମାନେ ବଡ଼ କାକୁସ୍ଥ ହୋଇ ରହିଥାଆନ୍ତି । ତେଲେଙ୍ଗାମାନଙ୍କର ସବୁଆଡ଼େ ରାଜୁତି । କାଁ ଭାଁ ଜଣେ ଅଧେ ଓଡ଼ିଆ ଜିଲ୍ଲା ବୋର୍ଡ଼ ବା ଅନ୍ୟ କେଉଁଠି ସଭ୍ୟ ଥିଲେ ।

ସେତେବେଳେ ଓକିଲ ହରିହର ଦାଶ, ସାହିତ୍ୟିକ ନୀଳମଣି ବିଦ୍ୟାରତ୍ନ ଓ ସଂସ୍କାରକ ଶ୍ରୀବସ୍ତ ପଣ୍ଡାଙ୍କ ବଡ଼ ଖାତିର । ସେମାନଙ୍କ ସହିତ ମସୁଧା କରି ଶଶିଭୂଷଣ ଖଣ୍ଡିଏ ଓଡ଼ିଆ ଖବର କାଗଜ ବାହାର କରିବା ପାଇଁ ମନ ବଳାଇଲେ । ବନ୍ଧୁ ବାଂଧବମାନଙ୍କଠାରୁ ସାହାଯ୍ୟ ମିଳିଲା । ତଥାପି ଟଙ୍କାର ଅଭାବ । ବଡ଼ଖେମୁଣ୍ଡି ରାଜା କୃପାମୟ ଦେବଙ୍କଠାରୁ ସେ ପାଞ୍ଚଶହ ଟଙ୍କା ଋଣ ଆଣିଲେ । କାଗଜର ନାଁ ହେଲା 'ଆଶା' । ବାହାରିଲା ସାତ ଦିନକୁ ଥରେ । ୧୯୧୩ ମସିହା ମାର୍ଚ୍ଚମାସ ୧୩ ତାରିଖ ଦିନ । ଧୀରେ ଧୀରେ ଓଡ଼ିଶାର ବହୁ ଅଂଚଳରେ 'ଆଶା' ନାଁ କମେଇଲା । ରାଜା ଜମିଦାରମାନେ ପତ୍ରିକାଟିର ଉନ୍ନତି ପାଇଁ ସାହାଯ୍ୟ କଲେ । ୧୯୨୮ ଏପ୍ରିଲ ୧୩ ତାରିଖରୁ 'ସାପ୍ତାହିକ ଆଶା' ଦୈନିକ ହେଲା । ଏଥିରେ ଓଡ଼ିଶାକୁ ଅଲଗା ଗୋଟିଏ ରାଜ୍ୟ ରୂପରେ ଗଢ଼ିବା ପାଇଁ ଦେଶକୁ ସ୍ୱାଧୀନ କରିବା ପାଇଁ ଆଉ ଦେଶରୁ କୁସଂସ୍କାର ଦୂର କରିବା ପାଇଁ ଲେଖାମାନ ବାହାରୁଥିଲା ।

## ଅଛୁଆଁ ମାନଙ୍କୁ ଭାଇ ସଂବୋଧନ

ଏଠି ଗୋଟିଏ ମଜା କଥା କୁହାଯାଇପାରେ । ଦିଗପହଣ୍ଡିଠାରେ ଗୋଟିଏ ସଭା ହେଉଥିଲା । 'ଆଶା' ପତ୍ରିକା ବିଷୟରେ ଶଶିଭୂଷଣ ଲୋକମାନଙ୍କୁ ବୁଝାଉଥିଲେ । ସଭା ଆରମ୍ଭରେ ସମସ୍ତଙ୍କୁ ସେ ଭାଇମାନେ ବୋଲି ସଂବୋଧନ କଲେ । କାନକୁହାମାନେ ରାଜାଙ୍କ ନିକଟରେ କହିଲେ– ଶଶିବାବୁଙ୍କର ମାନଥାନ ବୋଲି କିଛି ନାହିଁ । ବ୍ରାହ୍ମଣ ହୋଇ ଅଛୁଆଁମାନଙ୍କୁ ଭାଇ ବୋଲି ଡାକିଲେ । ଆମ ଜାତିରେ କଳଙ୍କ ଲାଗିଲା । ରାଜା ସଂଗେ ସଂଗେ ଜବାବ୍ ମାଗିଲେ । ଅବଶ୍ୟ କଥାରେ ଭୁଆଁ ବୁଲାଇଦେବା ଶଶିବାବୁଙ୍କ ପକ୍ଷରେ ସହଜ ଥିଲା । ପଣ୍ଡିତମାନଙ୍କ ଆଡ଼କୁ ହାତ ଦେଖାଇ ସେ ବୁଝାଇଦେଲେ ଯେ ଏଇମାନେ ମୋର ଭାଇ । ତାଙ୍କ କଥାର ଜବାବ ଦେବାକୁ କେହି ସାହସ କରି ପାରିଲେ ନାହିଁ । ଦେଶରେ ସେତେବେଳେ ଛୁଆଁ ଅଛୁଆଁ ଭେଦଭାବ ବହୁତ । କିନ୍ତୁ ଶଶିଭୂଷଣ ଥିଲେ ସମସ୍ତଙ୍କର ଦରଦୀ ବନ୍ଧୁ ।

## ଘୋଡ଼ାଗାଡ଼ିର ଓଡ଼ିଆ ଘଣ୍ଟି

ଶଶିଭୂଷଣଙ୍କ ଲୋକପ୍ରିୟତା ବଢ଼ିବାରେ ଲାଗିଲା । ଓଡ଼ିଶାର ବଡ଼ ବଡ଼ ନେତାଙ୍କର 'ଆଶା' ସହ ଘନିଷ୍ଠ ସଂପର୍କ ଥିଲା । କ୍ରମେ ଶଶିବାବୁ ହେଲେ ବ୍ରହ୍ମପୁରରେ ଟାଣୁଆ ନେତା । ସେତେବେଳେ ସେଠାରେ ତେଲେଙ୍ଗା ବ୍ୟବସାୟୀ ଓ ପଣ୍ଡିତମାନଙ୍କର ଭାଉ ବେଶି ଥିଲା । ଓଡ଼ିଆମାନଙ୍କର ହାରି ଗୁହାରି ଶୁଣୁଛି କିଏ ? ଧୀରେ ଧୀରେ ଓଡ଼ିଆମାନେ ନିଜର ଅଧିକାର ଦାବି କଲେ । ଶଶିବାବୁ ୧୯୧୪ରେ ବ୍ରହ୍ମପୁର ମ୍ୟୁନିସପାଲିଟିର ଉପନଗରପାଳ ହେଲେ । ନଗରପାଳ

ଦାୟିତ୍ୱରେ ଥିଲେ ସାର୍ ପର୍ଶୁରାମ ପାତ୍ର । ସେକାଳର ନିୟମ ଅନୁସାରେ ସରକାର ଏପରି ନିଯୁକ୍ତି ଦେଉଥିଲେ । ଏଥିରେ ଖୁସି ହୋଇ ମଂଜୁଷା ରାଜା ଶଶିବାବୁଙ୍କୁ ଗୋଟିଏ ଘୋଡ଼ାଗାଡ଼ି ଉପହାର ଦେଲେ । ପ୍ରତିଦିନ



ସଂଧ୍ୟାରେ ସେ ଗାଡ଼ିରେ ବସି ସହର ବୁଲାବୁଲି କରୁଥିଲେ । ଏହି ଗାଡ଼ିରେ ଗୋଟିଏ ଘଣ୍ଟି ବଂଧା ହୋଇଥିଲା । ଘଣ୍ଟି ବାଜିଲେ ସମସ୍ତେ ଜାଣୁଥିଲେ ଶଶିବାବୁଙ୍କ ଗାଡ଼ି ଆସୁଛି । ଓଡ଼ିଆମାନେ ଖୁସି ହେଉଥିଲେ । ଧୀରେ ଧୀରେ ନିଜ ଉପରେ ସେମାନଙ୍କ ଭରସା ବଢ଼ିଲା । ଆଗଭଳି ସେମାନେ ଆଉ ନିଜକୁ ଛୋଟ ମନେକଲେ ନାହିଁ ।

## ଓଡ଼ିଆ ସ୍କୁଲ ପ୍ରତିଷ୍ଠା

ଉପନଗରପାଳ ଥିଲାବେଳେ ଶଶିବାବୁ ଏକ ଓଡ଼ିଆ ସ୍କୁଲ ବସାଇବାକୁ ମନ ବଳାଇଲେ । ଖଲ୍ଲିକୋଟ କଲେଜରେ ସେତେବେଳେ ୭ମ ଶ୍ରେଣୀ ଠାରୁ ଆଇ.ଏ. ପର୍ଯ୍ୟନ୍ତ ପଢ଼ା ଯାଉଥିଲା । ଏହାର ପରିଚାଳନା ମଣ୍ଡଳୀର ସମସ୍ତ ସଭ୍ୟଥିଲେ ତେଲେଙ୍ଗା । ଶିକ୍ଷକମାନେ

ମଧ୍ୟ ତେଲେଙ୍ଗା । ଓଡ଼ିଆ ପିଲାଙ୍କ ପାଇଁ ସ୍କୁଲଟିଏ ଦରକାର । ଶଶିଭୂଷଣଙ୍କ ଚେଷ୍ଟାରେ ବ୍ରହ୍ମପୁରର ଆସ୍କା ରୋଡ଼ରେ ଓଡ଼ିଆ ହାଇସ୍କୁଲ ବସିଲା ୧୯୧୮ ମସିହାରେ । ସରକାରଙ୍କ ଆଦେଶ ବଳରେ ମ୍ୟୁନିସପାଲିଟି ଏହାକୁ ଚଳାଇଲେ । ଓଡ଼ିଆମାନଙ୍କ ସମ୍ମାନ ବଢ଼ିଲା ।

ଓଡ଼ିଶାର ଲୋକମାନେ ଶିକ୍ଷିତ ହୁଅନ୍ତୁ । ମଣିଷ ଭଳି ମଣିଷ ହୋଇ ବଂଚନ୍ତୁ । ଏହା ହିଁ ଥିଲା ତାଙ୍କର ଏକମାତ୍ର ଇଚ୍ଛା । ଗୋପବଂଧୁ, ଗୋଦାବରୀଶ ଓ ନୀଳକଂଠଙ୍କ ଠାରୁ ଏହି ଶିକ୍ଷା ସେ ପାଇଥିଲେ । ବ୍ରହ୍ମପୁରଠାରେ ଓଡ଼ିଆ ସ୍କୁଲ ବସାଇଥିଲେ ।

## ଦଣ୍ଡାସି ସଂଗଠନ

ଗଂଜାମ ଅଂଚଳରେ ଦଣ୍ଡାସି ଜାତିର ଲୋକମାନେ ରହନ୍ତି । ସେମାନେ ସାଧାରଣତଃ ଗରିବ ଓ ଅଛୁଆଁ । କେହି କେହି ଚୋରି କରି ପେଟ ପୋଷନ୍ତି । ୧୯୨୩ ମସିହାରେ ଇଂରେଜ ସରକାର ଏମାନଙ୍କୁ ଦାଗୀ ବୋଲି ଘୋଷଣା କଲେ । ଲୋକମାନଙ୍କ ମନରେ ଅଶାନ୍ତି ଦେଖାଦେଲା । କେହି କେହି ସରକାରଙ୍କ ବିରୋଧରେ ଆନ୍ଦୋଳନ କରିବାକୁ ତିଆର ହେଲେ । ଜାତିର ଏହି ଅପମାନବେଳେ ସେମାନେ ଶଶିବାବୁଙ୍କ ପରାମର୍ଶ ଲୋଡ଼ିଲେ ।

ଶଶିବାବୁ କହିଲେ– ଜଣେ ଦି'ଜଣଙ୍କ ଭୁଲ ପାଇଁ ଗୋଟିଏ ଜାତିକୁ ନିନ୍ଦା କରିବା ଅନୁଚିତ । ସେ ସରକାରଙ୍କର ଏହି ଅନ୍ୟାୟ ଆଦେଶର ପ୍ରତିବାଦ କଲେ । ସାପ୍ତାହିକ 'ଆଶା'ରେ ଏହି ଘଟଣାର ଟିକିନିଖି ଖବର ପ୍ରକାଶ ପାଇଲା । ତାରା ତାରିଣୀ ପୀଠରେ ଏକ ବଡ଼ ସଭା ହେଲା ।

ସଭାରେ ବହୁଲୋକ ଠୁଳ ହେଲେ । ସେହିଠାରେ 'ଦଣ୍ଡାସି କୁଳ ସଂଗଠନ' ଗଢ଼ାଗଲା । ଶଶିବାବୁ ପ୍ରସ୍ତାବ ଦେଲେ— ସେମାନେ ଚୋରି କରିବେ ନାହିଁ । ଚୋରି କାର୍ଯ୍ୟରେ ଅନ୍ୟକୁ ସାହାଯ୍ୟ କରିବେ ନାହିଁ । ଅଖାଦ୍ୟ ଖାଇବେ ନାହିଁ ଇତ୍ୟାଦି । ପ୍ରସ୍ତାବଗୁଡ଼ିକ ସମସ୍ତଙ୍କ ମନକୁ ପାଇଲା । ଶଶିବାବୁଙ୍କୁ ସେମାନେ ମହାସଭାର ସଭାପତି କଲେ ।

ତାଙ୍କରି ଚେଷ୍ଟାରେ ଦଣ୍ଡାସିମାନଙ୍କୁ ଗାଁ ଜଗିବା କାମରେ ଲଗାଇ ଦିଆଗଲା । କେହି କେହି ଚପରାସୀ ଚାକିରି ପାଇଲେ । ସେମାନଙ୍କୁ ଦରମା ମିଳିଲା । ଚାଷଜମି ମଧ୍ୟ ମିଳିଲା । ସରକାରୀ କାଗଜ ପତ୍ରରେ ସେମାନଙ୍କ ଜମି ରେକର୍ଡ଼ଭୁକ୍ତ ହେଲା । କ୍ରମେ କ୍ରମେ ଦଣ୍ଡାସି ଜାତିର ଭାଗ୍ୟ ବଦଳିଲା ।

ଶଶିଭୂଷଣ ହେଲେ ଗରିବମାନଙ୍କର ବନ୍ଧୁ । ଏଥିପାଇଁ ତାଙ୍କୁ କେବଳ ପ୍ରଶଂସା ମିଳିଛି ତା' ନୁହେଁ । ବହୁ ଲୋକ ତାଙ୍କର ନିନ୍ଦା ବି କରିଛନ୍ତି । ବ୍ରାହ୍ମଣ ଲୋକ ହୋଇ ଦଣ୍ଡାସି ଲୋକଙ୍କ ସପକ୍ଷରେ କହିବା କ'ଣ ଦରକାର ? ଛୋଟଲୋକ ଗୁଡ଼ାକ- ତାଙ୍କ ପାଇଁ ଏତେ ଦରଦ କାହିଁକି ?

## ଜାତିଭାଇଙ୍କ ବାସନ୍ଦ

ଜାତିଭାଇମାନେ ସୁଯୋଗ ଖୋଜି ବୁଲୁଥିଲେ । ସୁବିଧା ଦେଖି ତାଙ୍କ ଉପରେ ଦାଉ ସାଧିବେ । ମୁହାଁ ମୁହିଁ ଯେତେ କହିଲେ ବି ଶଶିବାବୁଙ୍କର ସେଥିପ୍ରତି ଖାତିର ନଥିଲା । ସେ ଯାହା ଠିକ୍ ଭାବୁଥିଲେ ତାହା କରୁଥିଲେ । ଯଥା ସମୟରେ ଝିଅର ବାହାଘର ସ୍ଥିର ହେଲା । ଏକମାତ୍ର ସନ୍ତାନର ବାହାଘର ଧୁମ୍‌ଧାମ୍‌ରେ ହେବ । ଶଶିବାବୁ ନିଜର ଜ୍ଞାତି କୁଟୁମ୍ବ,

ବଂଧୁ, ବାଂଧବ- ସମସ୍ତଙ୍କୁ ନିମନ୍ତ୍ରଣ କଲେ । ତାଙ୍କର ଖ୍ୟାତି ସେତେବେଳକୁ ସାରା ଓଡ଼ିଶାରେ ବ୍ୟାପି ଯାଇଥାଏ । ତାଙ୍କ ନିମନ୍ତ୍ରଣକୁ ନାଁ କରିବ କିଏ ?

ହେଲେ ବ୍ରାହ୍ମଣମାନେ ଏତିକିବେଳେ ପୁରୁଣା ଖିଅ ବାହାର କଲେ । ଦଣ୍ଡାସିମାନଙ୍କ ସହ ସଂପର୍କ ରଖିଥିବାରୁ ତାଙ୍କ ଝିଅର ବାହାଘର ଭୋଜିରେ ଯୋଗଦେବେନାହିଁ ବୋଲି ଅଡ଼ି ବସିଲେ ।

କିନ୍ତୁ ବାହାଘର ଅଟକିଲା ନାହିଁ । ସାଙ୍ଗ ସାଥୀ ସମସ୍ତେ ଆସିଲେ । ଜିଲ୍ଲାର ବଡ଼ ବଡ଼ ଅଫିସର ମାନେ ଏଥିରେ ଯୋଗଦେଇଥିଲେ । ବହୁ ରାଜା ଜମିଦାର ଆଉ ଓଡ଼ିଶାର ଅନେକ ନେତା ଏହି ଉତ୍ସବକୁ ଆସିଥିଲେ । ସବୁକାମ ସୁରୁଖୁରୁରେ ସରିଲା । ଯେଉଁ ଜାତିଭାଇମାନେ ଭାବିଥିଲେ ଶଶିବାବୁ ଏଥର ହଇରାଣ ହେବେ ତାହା ହେଲା ନାହିଁ । ସେମାନେ ଅଲଗା ହୋଇ ରହିଥିବାରୁ ଖୁବ୍ ଅପମାନିତ ହେଲେ ।

ଶଶି ଭୂଷଣ ବ୍ରାହ୍ମଣ ଜାତିର ବଡ଼ ପଣରେ ବିଶ୍ୱାସ କରୁନଥିଲେ । ମଣିଷ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଥିଲା ତାଙ୍କ ପ୍ରାଣର କଥା । ସେ ନିୟମିତ ପୂଜାପାଠ କରୁଥିଲେ । ଗୀତା ପାଠ, ଗାୟତ୍ରୀ ଜପ ଓ ପୁରାଣ ଚର୍ଚ୍ଚାରେ ତାଙ୍କୁ ଯଥେଷ୍ଟ ଆନନ୍ଦ ମିଳୁଥିଲା ।



## ଦୋବେଇ ବର

ଶଶିଭୂଷଣଙ୍କ ଝିଅର ବିବାହ ଘଟଣାରୁ ଆଉ ଗୋଟିଏ କଥା ଶିଖିବାର ଅଛି । ତାଙ୍କର ଜୋଇଁ ବଳଭଦ୍ର ମିଶ୍ର ଥିଲେ ଜଣେ ଡାକ୍ତର । ପୂର୍ବରୁ ତାଙ୍କର ବିବାହ ହୋଇଥିଲା, ମାତ୍ର କେଇ ବର୍ଷ ପରେ ସ୍ତ୍ରୀ ଆରପାରିକୁ ଚାଲିଗଲେ । ତାଙ୍କର ପୁଅଟିଏ ଥିଲା । ଥରେ ବାହାହୋଇଥିବା ଝିଅ ବା ପୁଅକୁ ଆଜିକାଲି ମଧ୍ୟ ଅନେକ ଗ୍ରହଣ କରିବାକୁ ନାରାଜ । ସେକାଳରେ ଏହିପରି ବିବାହ ହେଉ ନଥିଲା । ତଥାପି ନିଜର ଷୋହଳ ବର୍ଷର ଏକମାତ୍ର ଝିଅକୁ ଶଶିବାବୁ ବଳଭଦ୍ର ସହ ବାହାଦେବାକୁ ଆଗେଇ ଆସିଲେ । ସମାଜରେ ସଂସ୍କାର ଆଣିବା କଥା ପରକୁ କହିଦେବା ସହଜ । ନିଜ ଘରେ ବା ନିଜ ଜୀବନରେ ଏପରି କାମ କରିବାକୁ ଖୁବ୍ କମ୍ ଲୋକ ବାହାରି ଥାନ୍ତି ।

## ବଳି ପ୍ରଥା ବିରୋଧରେ ଅଭିଯାନ

ତାରା ତାରିଣୀ ପୀଠ ଦକ୍ଷିଣ ଓଡ଼ିଶାର ଏକ ପ୍ରସିଦ୍ଧ ପୀଠ । ଓଡ଼ିଶା ଓ ଓଡ଼ିଶା ବାହାରେ ମଧ୍ୟ ଏହି ପୀଠର ମହିମା କଥା ଲୋକେ ଜାଣନ୍ତି । ଚୈତ୍ରମାସ ପ୍ରତି ମଙ୍ଗଳବାର ଏଠାରେ ହଜାର ହଜାର ଛେଳି ବଳି ଦିଆଯାଉଥିଲା । ଅଂଚଳଟି ରକ୍ତ ମାଂସ ଗଂଧରେ ପୂରି ଯାଉଥିଲା । ୧୯୩୧ ମସିହାରେ ଶଶିଭୂଷଣ ସ୍ଥିର କଲେ- ଏହା ବନ୍ଦ ହେବା ଉଚିତ । ତେଣୁ ସେ ତାଙ୍କର ବଂଧୁ ଓ ସମର୍ଥକମାନଙ୍କ ସହ ଏ ବିଷୟରେ ବିଚାର କଲେ । କଥାଟି ଚାରିଆଡ଼େ ପ୍ରଘଟ ହୋଇଗଲା ।

ପୀଠର ପୂଜକମାନେ ଏହି ପ୍ରସ୍ତାବର ବିରୋଧ କଲେ । ଦେବୀ ପୂଜାର ବିଧି ଲଙ୍ଘନ ହେବ । ବର୍ଷ ବର୍ଷର ପରଂପରା ନଷ୍ଟ ହୋଇଯିବ ।

ସାଧାରଣ ଲୋକେ ଦେବୀଙ୍କ କୃପାରୁ ବଂଚିତ ହେବେ । ଅସଲ କଥା ହେଲା - ପୂଜକମାନଙ୍କ ପାଉଣା ବନ୍ଦ ହୋଇଯିବ । ଚୈତ୍ରମାସର ଆୟ ବର୍ଷଯାକର ରୋଜଗାର କହିଲେ ଚଳେ ।

ଶଶିଭୂଷଣ ଯାହା ଠିକ୍ ବୋଲି ଭାବନ୍ତି ତାହା କରିବାକୁ ପଛାନ୍ତି ନାହିଁ । ସେ ନିଜର ମନକଥା ସମସ୍ତଙ୍କୁ ଜଣାଇଲେ । ଅନେକ ଉତ୍ସାହୀ ଲୋକ ତାଙ୍କର ଏହି ପ୍ରସ୍ତାବକୁ ସମର୍ଥନ କଲେ । ସ୍ଥିର ହେଲା- ସାଙ୍ଗ ସାଥୀଙ୍କ ସହ ତାରା ତାରିଣୀ ପୀଠରେ ସେ ଚୈତ୍ର ମଙ୍ଗଳବାର ପୂର୍ବରୁ ପହଞ୍ଚିବେ । ବିଭିନ୍ନ ସ୍ଥାନରେ ବଳି ପ୍ରଥା ବିରୋଧରେ ସଭାମାନ ହେଲା । ଶଶିବାବୁଙ୍କ ଭାଷଣରେ ଲୋକମାନେ ଉତ୍ସାହିତ ହେଲେ । ଏଣେ ପୂଜକମାନେ ଜିଲ୍ଲାପାଳଙ୍କୁ ଜଣାଇଲେ ଯେ ପୀଠର ବହୁକାଳର ପ୍ରଥା ନଷ୍ଟ ହେବ । ହିନ୍ଦୁ ସମାଜରେ ଏହା ଏକ ବିଧିରୂପେ ଚଳି ଆସିଛି । ସରକାରଙ୍କ ତରଫରୁ ଉପଯୁକ୍ତ ପଦକ୍ଷେପ ନିଆଯାଉ ।•

ଜିଲ୍ଲାପାଳ ଜଣେ ମାଜିଷ୍ଟ୍ରେଟଙ୍କୁ ଘଟଣା ସ୍ଥଳକୁ ପଠାଇଲେ । ପୀଠରେ ୧୪୪ ଧାରା ହେବା କଥା । ମାଜିଷ୍ଟ୍ରେଟ୍ ଜଣକ ମୁସଲମାନ ହୋଇଥିବାରୁ ସେ ପାହାଡ଼ ଉପରକୁ ଗଲେ ନାହିଁ । କିଛି ସମୟ ତଳେ ରହି ଛତ୍ରପୁର ଫେରିଗଲେ । ଶଶିବାବୁ ନିଜର ଦଳ ବଳ ସହ ପୀଠରେ ହାଜର ହେଲେ । ଲୋକମାନଙ୍କୁ ବୁଝାଇଲେ । ରୀତି ଅନୁସାରେ ଆଗ ପାଟ ବୋଦାକୁ ବଳି ଦିଆଯିବ । ତା'ପରେ ମାନସିକ ବୋଦା ସବୁ ବଳି ପଡ଼ିବେ । ଶଶିବାବୁ ପାଟ ବୋଦା ପାଖରେ ବେକକୁ ଦେଖାଇ କହିଲେ- 'ଆଗ ମୋତେ ବଳି ଦିଅ । ମାଆ ଯଦି ରକ୍ତ ଚାହୁଁଛି ଆଗ ମୋ ରକ୍ତ ପିଉ' । ସମସ୍ତେ ଏଭଳି ଅବସ୍ଥା ଦେଖି ଚୁପ୍ ହୋଇ ରହିଲେ ।



ସେ କହିଲେ, ଆଉ ମାଆଙ୍କର ବଳି ପାଇଁ ଆଗ୍ରହ ନାହିଁ । ମାଆଙ୍କ ଆଜ୍ଞାରେ ମାଜିଷ୍ଟ୍ରେଟ୍ ମଧ୍ୟ ଫେରିଗଲେ । ଏହାକୁ ହଜାର ହଜାର ଲୋକ 'ହରିବୋଲ' 'ହରିବୋଲ' ପକାଇ ସମର୍ଥନ କଲେ । ସେଦିନ ପାଟ ବୋଦା ବଳି ପଡ଼ି ପାରିଲା ନାହିଁ ।ତା'ପରଦିନ ଭକ୍ତମାନେ ନିଜ ନିଜର ମାନସିକ ବୋଦା ଧରି ଘରକୁ ଫେରିଲେ । ତାରା ତାରିଣୀ ପୀଠରେ ବଳିପ୍ରଥା ବନ୍ଦ ହୋଇଗଲା । କେତେକ ଲୋକ କହିଲେ— ମାଆଙ୍କ ଦାନାରେ ଯିଏ ଧୂଳି ଦେଲା, ତାକୁ ସିଏ କ'ଣ ଛାଡ଼ିବେ ? ଠାକୁରାଣୀ କଞ୍ଚା ଖାଇ ଯିବେ । କେଇଟା ଦିନ ଅପେକ୍ଷା କର ।

ହେଲେ ଶଶିଭୂଷଣଙ୍କ ଜୀବନ ଯେମିତି କଟୁଥିଲା ସେମିତି କଟିଲା । ନିଜର ସମାଜକୁ ଓ ପରିବେଶକୁ ସୁଧାରିବାକୁ ସେ ସବୁବେଳେ ଚେଷ୍ଟା କରୁଥିଲେ ।

**ସେ କାଳର କଥା**

ପ୍ରକୃତରେ ଶଶିଭୂଷଣଙ୍କ ସମୟ ଥିଲା ଦେଶର ଏକ ସଂକଟର ସମୟ । ଗୋଟିଏ ପଟେ ପୁରୁଣା ରୀତିନୀତି ସବୁ ଚାଲୁ ରହିଥିଲା ।

ଆରପଟେ ପାଠୁଆ ଲୋକମାନେ ଅନେକ ପରିବର୍ତ୍ତନ ଚାହୁଁଥିଲେ । ପଶୁବଳି, ବାଲ୍ୟବିବାହ, ସତୀଦାହ, ଜାତିପ୍ରଥା ଭଳି ଅନେକ ବ୍ୟବସ୍ଥା ଥିଲା ସମାଜର କଳଙ୍କ । କେଉଁଠି କେଉଁଠି ନରବଳି ଦେଇ ଅପରାଧ କରିବାକୁ ଲୋକେ ପଛାଉ ନଥିଲେ । ବାବାଜୀ ଓ ପୁରୋହିତଙ୍କର କାମ ଥିଲା ଲୋକଙ୍କୁ ଠକିବା । ରାଜା ରାଜୁଡ଼ା ଶାସନରେ କି ବା ନ୍ୟାୟ ମିଳୁଥିଲା ? ଲୋକେ ଭାଗ୍ୟକୁ ଆଦରି ସବୁ ସହୁଥିଲେ ।

ସଂସ୍କାର କ୍ଷେତ୍ରରେ ଇଂରେଜମାନେ ଖୁବ୍ ଆଗୁଆ ଥିଲେ । ସେଥିପାଇଁ ସେମାନଙ୍କୁ ବହୁତ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା । ଆଇନ ବଳରେ ନରବଳି, ସତୀଦାହ ଭଳି ପ୍ରଥା ବନ୍ଦ ହେଲା । ଇଂରାଜୀ ଶିକ୍ଷାଲାଭ କରିଥିବା ଯୁବକମାନେ ଏ କ୍ଷେତ୍ରରେ ଆଗୁଆ ଥିଲେ । ଏମାନେ ସରକାରଙ୍କ ସଂସ୍କାର ନୀତିକୁ ସମର୍ଥନ କରୁଥିଲେ । ଶହ ଶହ ବର୍ଷର ପୁରୁଣା ରୀତି ନୀତିକୁ ଭାଙ୍ଗିବା ଏତେ ସହଜ ନଥିଲା । ଲୋକେ ସନ୍ଦେହ ଘେରରେ ଥିଲେ । ନୂଆ ପିଢ଼ିର ଲୋକମାନଙ୍କୁ ସମାଜର ନାଲି ଆଖି ସହିବାକୁ ପଡୁଥିଲା । ଶାସ୍ତ୍ର ନଜାଣିଥିବା ଲୋକେ ଶାସ୍ତ୍ରରେ ଅଛି ବୋଲି ବିଶ୍ୱାସ କରୁଥିଲେ । ପୁରୁଣା କାଳିଆ ପଣ୍ଡିତମାନେ ଶାସ୍ତ୍ରର ଭୟ ଦେଖାଇ ଲୋକମାନଙ୍କୁ ଭୁଆଁ ବୁଲାଉଥିଲେ । ବଡ଼ ବଡ଼ିଆମାନେ ଯାହା କରୁଛନ୍ତି ବା କହୁଛନ୍ତି ତାକୁ ବିରୋଧ କରିବା କେତେଜଣଙ୍କ ପକ୍ଷରେ ସମ୍ଭବ ? କାଳେ କିଛି ଅଘଟଣ ଘଟିବ ବା ବିପଦର ହାବୁଡ଼ରେ ପଡ଼ିବାକୁ ହେବ । ନୂଆ ରାସ୍ତା ଖୋଜିବା ପାଇଁ ସେମାନଙ୍କ ନିକଟରେ ବଳ ନଥିଲା । ଶିକ୍ଷାର ବି ଅଭାବ ଥିଲା । ବନ୍ୟା, ମରୁଡ଼ି, ମହାମାରୀ ଯୋଗୁଁ ସମାଜର

ମେରୁଦଣ୍ଡ ବଙ୍କା ହୋଇଯାଇଥିଲା । ତେଣୁ ଅଧିକାଂଶ ଲୋକ ପୁରୁଣା ଦଦରା ରାସ୍ତାରେ ଚାଲୁଥିଲେ ।

ଓଡ଼ିଶାରେ ସଂସ୍କାର ଆନ୍ଦୋଳନର ଯେଉଁମାନେ ଆଗୁଆନେତା ଥିଲେ- ସେମାନେ ହେଲେ ନୀଳମଣି ବିଦ୍ୟାରତ୍ନ, ଶ୍ରୀବସ୍ତ ପଣ୍ଡା, ଗୌରୀ ଶଙ୍କର ରାୟ, ଜଗମୋହନ ଲାଲ, ଫକୀର ମୋହନ ସେନାପତି, ପଣ୍ଡିତ ନୀଳକଣ୍ଠ ଦାଶ ପ୍ରଭୃତି । ଶଶିଭୂଷଣ ଏଇଭଳି ମହାନ୍ ନେତାମାନଙ୍କଠାରୁ ପ୍ରେରଣା ପାଇଥିଲେ । ସାହସ ଓ ଶକ୍ତି ସଂଚୟ କରି ଏ କ୍ଷେତ୍ରରେ ସେ ଅନେକ କାର୍ଯ୍ୟ କରିଥିଲେ । ଓଡ଼ିଶାର ଟେକ ରଖିବା, ଜାତୀୟ ଆନ୍ଦୋଳନରେ ସହଯୋଗ କରିବା ପାଇଁ ଶଶିବାବୁ ସବୁବେଳେ ଅଣ୍ଟାଭିଡ଼ି ବାହାରୁଥିଲେ ।

## ଆଉ କିଛି ଦେଶ ହିତକର କାର୍ଯ୍ୟ

ଉତ୍କଳ ସମ୍ମିଳନୀ ସହ ସହଯୋଗ — ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀର ପ୍ରଥମ ସଭା କଟକରେ ହେଲା । ମଧୁବାବୁ ଥିଲେ ଏହାର କର୍ତ୍ତା । ଓଡ଼ିଆ ଭାଷା ଭାଷୀ ସବୁ ଅଂଚଳରୁ ଲୋକେ ଆସିଥିଲେ । ରାଜା ମହାରାଜାଙ୍କ ଠାରୁ ସାଧାରଣ ପ୍ରଜାଙ୍କ ପର୍ଯ୍ୟନ୍ତ । ଗୋଟିଏ ଲକ୍ଷ୍ୟ- ସବୁ ଓଡ଼ିଆ ଅଂଚଳ ଏକ ହେଉ ।

ସେତେବେଳେ କେବଳ କଟକ, ପୁରୀ, ବାଲେଶ୍ୱରକୁ ଓଡ଼ିଶା କୁହାଯାଉଥିଲା । ଆଉ ସବୁ ଗଡ଼ଜାତ ଅଂଚଳ । ରାଜା ମହାରାଜାମାନେ ଶାସନ କରୁଥିଲେ । ଗଂଜାମ, ଫୁଲବାଣୀ ଓ ଜୟପୁର ମାନ୍ଦ୍ରାଜ ଅଧୀନରେ ଥିଲା । ଓଡ଼ିଆମାନେ ଏହିପରି ଭିନ୍ନ ଭିନ୍ନ ଅଂଚଳରେ ବାଣ୍ଟି

ହୋଇ ରହିଥିଲେ । ନିଜର ରାଜ୍ୟ ନଥିଲା । ନିଜର ଗର୍ବ ନଥିଲା । ନିଜର ଅଭିମାନ ନଥିଲା । ମଧୁବାବୁ ଓଡ଼ିଆଙ୍କ କାନରେ ଜାତୀୟତାର ମନ୍ତ୍ର ଫୁଙ୍କିଲେ । ସମସ୍ତଙ୍କୁ ଏକଜୁଟ ହେବାକୁ ଆହ୍ୱାନ ଦେଲେ । ନୂତନ ଓଡ଼ିଶାର ଦାବି ସରକାରଙ୍କୁ ଜଣାଇଲେ । ତାଙ୍କ ଡାକରାରେ ଓଡ଼ିଶାର ନିଦ ଭାଙ୍ଗିଲା । ରାଜା ମହାରାଜା, ଛାତ୍ର, ଶିକ୍ଷକ, ଚାଷୀ, ମଜୁରିଆ ସମସ୍ତେ ଅଣ୍ଟା ଭିଡ଼ି ବାହାରିଲେ । ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା - ସ୍ୱତନ୍ତ୍ର ଓଡ଼ିଶା ନୂତନ ଓଡ଼ିଶା ।

ପ୍ରତିବର୍ଷ ଉତ୍କଳ ସମ୍ମିଳନୀର ସଭା ବହୁ ସ୍ଥାନରେ ହେଲା । ମଧୁବାବୁଙ୍କ ଖ୍ୟାତି ବଢ଼ିଲା । ସମସ୍ତେ ତାଙ୍କୁ ନେତା ବୋଲି ମାନିଲେ । ସ୍ୱତନ୍ତ୍ର ଓଡ଼ିଶା ଗଠନ ସିନା ମୁଖ୍ୟ ଦାବି ଥିଲା । ଓଡ଼ିଶାର ଚାଷବାସ ଜଳ ସେଚନ ଶିକ୍ଷାର ଉନ୍ନତି ପାଇଁ ମଧ୍ୟ ଏହି ସମ୍ମିଳନୀ ଜରିଆରେ ଦାବି କରାଗଲା ।

୧୯୧୨ରେ ଶଶିଭୂଷଣ କଲିକତାରୁ ବ୍ରହ୍ମପୁର ଆସିଲେ । ମଧୁବାବୁ, ଗୋପବନ୍ଧୁ, ନୀଳକଣ୍ଠଙ୍କ ଭଳି ନେତାଙ୍କ ସହ ତାଙ୍କର ସମ୍ପର୍କ ସ୍ଥାପିତ ହୋଇ ସାରି ଥିଲା । ଏବେ ବ୍ରହ୍ମପୁରରେ ଥାଇ ଜାତୀୟ କାର୍ଯ୍ୟରେ ମନ ଦେଲେ । ସାପ୍ତାହିକ 'ଆଶା' ପ୍ରକାଶ ପାଇଲା । ପତ୍ରିକା ସଂପାଦନା ଜରିଆରେ ଓଡ଼ିଆ ଆନ୍ଦୋଳନକୁ ସେ ଏକ ଜନ ଆନ୍ଦୋଳନରେ ପରିଣତ କଲେ । 'ଆଶା' ପତ୍ରିକାର ଚାହିଦା ଏତେ ବଢ଼ିଗଲା ଯେ ପରେ ତାହା ଦୈନିକ ରୂପେ ପ୍ରକାଶ ପାଇଲା । ଶଶିଭୂଷଣ ସ୍ୱତନ୍ତ୍ର ଓଡ଼ିଶା ଦାବିକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରୁଥିଲେ । ଉତ୍କଳ

ସମ୍ମିଳନୀର ସବୁ ସଭା ସମିତିରେ ଯୋଗଦେଇ ସେ ଜାତୀୟ କାର୍ଯ୍ୟକୁ ଆଗେଇ ନେଇଥିଲେ ।

## ଅସହଯୋଗ ଆନ୍ଦୋଳନରେ ଅଂଶ ଗ୍ରହଣ

ଗାନ୍ଧିଜୀଙ୍କ ଡାକରାରେ ୧୯୨୧ରେ ଅସହଯୋଗ ଆନ୍ଦୋଳନ ହେଲା । ଅର୍ଥାତ୍ ସ୍ୱାଧୀନତା ଦାବିରେ ଭାରତର ଲୋକମାନେ ଇଂରେଜ ସରକାରଙ୍କ ସହ ସହଯୋଗ କରିବେ ନାହିଁ । ବହୁସ୍ଥାନରେ ଛାତ୍ରମାନେ ସ୍କୁଲ ଛାଡ଼ିଲେ । ଶିକ୍ଷକମାନେ ପାଠ ପଢ଼ାଇବା ବନ୍ଦ କଲେ । ଓକିଲମାନେ କୋର୍ଟକୁ ଗଲେ ନାହିଁ । ବିଦେଶୀ ଲୁଗା ପୋଡ଼ାଗଲା । ବିଦେଶୀ ଜିନିଷ ଫୋପଡ଼ା ଗଲା । ଅନେକ ଚାକିରିରୁ ଇସ୍ତଫା ଦେଇଦେଲେ ।

ଶଶିଭୂଷଣ କଂଗ୍ରେସ ପାଇଁ କାର୍ଯ୍ୟ କରୁଥିଲେ । ନିଜ ପତ୍ରିକାରେ ଆନ୍ଦୋଳନର ସବୁ ଖବର ଛାପି ଲୋକଙ୍କ ନିକଟରେ ପହଞ୍ଚାଉ ଥିଲେ । ୧୯୨୧ ମାର୍ଚ୍ଚ ମାସରେ ଗାନ୍ଧିଜୀ ବ୍ରହ୍ମପୁର ଆସିଲେ । ତାଙ୍କ ସହ ଆନ୍ଦୋଳନ ସଂପର୍କରେ ଆଲୋଚନା ହେଲା । ତେଲେଙ୍ଗା ଓଡ଼ିଆ ବିବାଦ କଥା ମଧ୍ୟ ପଡ଼ିଲା । ଗଂଜାମ ଜିଲ୍ଲା ତ ଓଡ଼ିଶାରେ ନଥିଲା । ଶଶିବାବୁ ଓ ନିରଂଜନ ପଟ୍ଟନାୟକ ଗାନ୍ଧିଜୀଙ୍କୁ ସେ ଅଂଚଳର କଂଗ୍ରେସର ଅବସ୍ଥା ବୁଝାଇଲେ । ଶେଷରେ ଜିଲ୍ଲା କଂଗ୍ରେସ ଓଡ଼ିଶା କଂଗ୍ରେସ ସହ ସାମିଲ ହେଲା । ଓଡ଼ିଆମାନେ ଜିତାପଟ ହାସଲ କଲେ ।

ଓଡ଼ିଶା ପ୍ରଦେଶ ଗଠନ ପ୍ରସ୍ତାବକୁ କଂଗ୍ରେସ ନେତାମାନେ ବିରୋଧ କରୁଥିଲେ । ଆଗ ଭାରତର ସ୍ୱାଧୀନତା । ପରେ ପ୍ରଦେଶ ଗଠନ ।

ଶଶିଭୂଷଣ କଂଗ୍ରେସରେ ଥାଇ ମଧ୍ୟ ଆଗ ପ୍ରଦେଶ ଗଠନ କଥା କହୁଥିଲେ । କାରଣ ପ୍ରଥମେ ସ୍ୱାଧୀନତା ଆସିଲେ ଆଂଚଳିକ ନେତାମାନଙ୍କର ପ୍ରାଧାନ୍ୟ ବଢ଼ିଯିବ । ପ୍ରଦେଶ ଗଠନ କାର୍ଯ୍ୟ ସହଜ ହେବ ନାହିଁ । ଗୋପବନ୍ଧୁଙ୍କ କଂଗ୍ରେସ କାର୍ଯ୍ୟରେ ଶଶିବାବୁ ସବୁ ପ୍ରକାର ସାହାଯ୍ୟ କରୁଥିଲେ । ମାତ୍ର ନୂଆ ଓଡ଼ିଶା ପାଇଁ ତାଙ୍କର ପ୍ରାଣ ବ୍ୟାକୁଳ ହୋଇ ଉଠୁଥିଲା ।

## ଲବଣ ସତ୍ୟାଗ୍ରହ ଓ ଜେଲ୍ ବରଣ

୧୯୩୦ରେ ଲବଣ ସତ୍ୟାଗ୍ରହ ହେଲା । ଇଂରେଜ ସରକାରଙ୍କ ନିୟମ ଅନୁସାରେ ଭାରତର ଲୋକମାନେ ଲୁଣ ମାରି ପାରୁ ନଥିଲେ । ଘର ପାଖରେ ସମୁଦ୍ର । ମାତ୍ର ଆମ ପାଇଁ ଲୁଣ ଆସୁଥିଲା ଲଣ୍ଡନରୁ । ଗାନ୍ଧିଜୀ ଡାକରା ଦେଲେ- ଅନ୍ୟାୟ ଆଇନ ମାନିବା ନାହିଁ । ନିଜ ନିଜ ଘର ପାଖରେ ଲୁଣ ମାରିବା । ସମସ୍ତଙ୍କ ମନକୁ କଥାଟା ଖୁବ୍ ପାଇଲା । ଲୋକମାନେ ଆନନ୍ଦର ସହ ଲୁଣ ମାରିବା ଅଭିଯାନରେ ଯୋଗ ଦେଲେ । ଗାନ୍ଧିଜୀ ଗୁଜୁରାଟର ଦାଣ୍ଡି ଠାରେ ପହଞ୍ଚିଲେ । ସେଦିନ ଏପ୍ରିଲ ୩୦ । ସାରା ଭାରତରେ ବିପୁଳ ଉତ୍ସାହ ଓ ଉନ୍ମାଦନା । ଦାଣ୍ଡି ସହ ବିଭିନ୍ନ ସ୍ଥାନରେ ସତ୍ୟାଗ୍ରହୀମାନେ ଆଇନ ଭାଂଗିଲେ । ଗାନ୍ଧିଜୀ ବନ୍ଦୀ ହେଲେ ।



ଶଶିଭୂଷଣ ସେତେବେଳେ ଗଂଜାମ କଂଗ୍ରେସର ସଭାପତି । ଲବଣ ସତ୍ୟାଗ୍ରହକୁ ସେ ସୁଚାରୁରୂପେ ପରିଚାଳନା କରିଥିଲେ । ଦୈନିକ 'ଆଶା'ରେ ସରକାର ବିରୋଧୀ ସଂବାଦମାନ ପ୍ରକାଶ ପାଇଲା । ନିରଂଜନ ପଟ୍ଟନାୟକଙ୍କ ସଂପାଦନାରେ 'ଗାନ୍ଧୀ ସମାଚାର' ପତ୍ରିକା ଆଶା ପ୍ରେସ୍‌ରୁ ଛପା ହେଉଥିଲା । ସରକାର ଅନୁମାନ କରିନେଲେ ସବୁରି ମୂଳରେ ଅଛନ୍ତି ଶଶିବାବୁ । ରାଜଦ୍ରୋହ ଅପରାଧରେ ତାଙ୍କୁ ଗିରଫ କରାଗଲା । ସେ ପ୍ରାୟ ଆଠମାସ ଜେଲ୍‌ରେ ରହିଲେ । ପ୍ରଥମେ ବ୍ରହ୍ମପୁର ଓ ପରେ ଭେଲୋରରେ ତାଙ୍କର ଜେଲ୍ ଜୀବନ କଟିଥିଲା ।

## ସାହିତ୍ୟ ସେବା

ଶଶିଭୂଷଣଙ୍କ ସାପ୍ତାହିକ 'ଆଶା' ସମଗ୍ର ଓଡ଼ିଆ ଅଂଚଳରେ ଆଦୃତ ହୋଇଥିଲା । ସେତେବେଳେ ଗୋପବନ୍ଧୁ, ନୀଳକଣ୍ଠ ଓ ଗୋଦାବରୀଶ ପ୍ରଭୃତି ଲେଖକମାନେ ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥିଲେ । ସେମାନଙ୍କ ଉଦ୍ୟମରେ ସତ୍ୟବାଦୀ ମାସିକ ପତ୍ରିକା ପ୍ରକାଶ ପାଇବା ସ୍ଥିର ହେଲା । 'ଆଶା'ର ସଂପାଦକ ଏହାର ଛାପିବା ଦାୟିତ୍ୱ ନେଲେ । ଗୋପବନ୍ଧୁ ଥିଲେ ପତ୍ରିକାର ସଂପାଦକ ଓ ଶଶିଭୂଷଣ ଥିଲେ ଏହାର ପରିଚାଳକ । ଏହାର ପ୍ରଥମ ସଂଖ୍ୟା ୧୯୧୫ରେ ପ୍ରକାଶ ପାଇଲା । ୧୯୧୭ରେ 'ସତ୍ୟବାଦୀ' ବ୍ରହ୍ମପୁର ବଦଳରେ ପୁରୀରୁ ପ୍ରକାଶିତ ହେଲା । ସୁତରାଂ ସେଠାରେ ଏକ ସାହିତ୍ୟ ପତ୍ରିକାର ଅଭାବ ଅନୁଭୂତ ହେଲା । ଶଶିଭୂଷଣ ଏ କ୍ଷେତ୍ରରେ ଆଗୁଆ ହୋଇ ବାହାରିଲେ । ତାଙ୍କ ସଂପାଦନାରେ 'ପ୍ରଦୀପ' ମାସିକ ସାହିତ୍ୟ ପତ୍ରିକା ଆତ୍ମପ୍ରକାଶ କଲା । ସେ କାଳର ସମସ୍ତ ଖ୍ୟାତନାମା ବ୍ୟକ୍ତିମାନଙ୍କର ଲେଖା ତହିଁରେ ପ୍ରକାଶିତ ହେଉଥିଲା । ନିଜେ ଶଶିବାବୁ ମଧ୍ୟ ଅନେକ ବିଷୟରେ ଲେଖୁଥିଲେ ।

ବିଶିଷ୍ଟ କଂଗ୍ରେସ ନେତା ନିରଂଜନ ପଟ୍ଟନାୟକଙ୍କ 'ଗାନ୍ଧୀ ସମାଚାର' କଥା ପୂର୍ବେ କୁହାଯାଇଛି । ଗୋଦାବରୀଶ ମହାପାତ୍ରଙ୍କ

'ନିଆଁଖୁଣ୍ଟା' ମଧ୍ୟ ପ୍ରଥମେ ଆଶା ପ୍ରେସ୍‌ରୁ ପ୍ରକାଶିତ ହୋଇଥିଲା ୧୯୩୮ ମାର୍ଚ୍ଚରେ । ଏହି ପତ୍ରିକାର ସମାଲୋଚନା ଧର୍ମୀ ଲେଖା ଚାରିଆଡ଼େ ଚହଳ ପକାଉଥିଲା । ଗୋଦାବରୀଶ ଦୈନିକ 'ଆଶା'ର ସହ-ସଂପାଦକ ଥିଲେ । ପରେ ସେ ନିଜର ମନ ମୁତାବକ ପତ୍ରିକାଟିଏ ବାହାର କରିବାକୁ ଅଣ୍ଟା ଭିଡ଼ିଲେ । ଶଶିଭୂଷଣ ତାଙ୍କ ପଛରେ ଠିଆହେଲେ । କିଛିକାଳ ପରେ 'ନିଆଁଖୁଣ୍ଟା' କଟକକୁ ଆସିଲା ।

## ଶେଷକଥା

ଶଶିଭୂଷଣ ଯେଉଁ ସବୁ କ୍ଷେତ୍ରରେ କାର୍ଯ୍ୟ କରିଥିଲେ ସବୁଥିରେ କୃତିତ୍ୱ ଦେଖାଇଥିଲେ । ବହୁ ସରକାରୀ ଓ ବେସରକାରୀ ପଦ ପଦବୀ ତାଙ୍କୁ ମିଳିଥିଲା । ଜିଲ୍ଲା କଂଗ୍ରେସ ସଭାପତି, ବ୍ରହ୍ମପୁର ଉପ ନଗରପାଳ ପଦ ବ୍ୟତୀତ ମାନ୍ଦ୍ରାଜ ବିଧାନ ପରିଷଦର ଦୁଇଥର ସଭ୍ୟ ହୋଇଥିଲେ । ଜଣେ ସ୍ୱାଭିମାନୀ ଓଡ଼ିଆ ହିସାବରେ ବିରୋଧୀ ପକ୍ଷ ସହ ନିଜର ସମସ୍ତ ଶକ୍ତି ଖଟାଇ ଯୁଦ୍ଧ କରିବାକୁ ପଛାଇ ନଥିଲେ । ରାଜନୈତିକ ଆନ୍ଦୋଳନ, ସଂସ୍କାର ଆନ୍ଦୋଳନ, ସାଂସ୍କୃତିକ ଆନ୍ଦୋଳନ— ସବୁଠି ଥିଲା ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ।

ଏହି ସଂଗ୍ରାମୀ ବୀର ୧୯୪୩ ମାର୍ଚ୍ଚ ୧୯ ତାରିଖ ଦିନ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ଉତ୍କଳ ମାତା ତାଙ୍କର ଜଣେ ବରପୁତ୍ରଙ୍କୁ ହରାଇଥିଲା । ସାରା ଓଡ଼ିଶାର ବଡ଼ ବଡ଼ ନେତାଙ୍କଠାରୁ ଆରମ୍ଭ କରି ଗାଁ ଗଣ୍ଡାରେ ରହୁଥିବା ଲୋକମାନେ ମଧ୍ୟ ତାଙ୍କ ମୃତ୍ୟୁରେ ଅତି ଦୁଃଖିତ ହୋଇଥିଲେ । ସଂସ୍କାରକ ଶଶିଭୂଷଣ ମରିଯାଇ ବି ଅମର । ଏବେ ଅନେକ କାମ ହେଉଛି ସମାଜର ଉନ୍ନତି ପାଇଁ । କାମ ଆରମ୍ଭରେ ତାଙ୍କରି ନାମ ମନେ ପଡ଼େ । ସଭିଏଁ କୁହନ୍ତି "ଶଶିଭୂଷଣ ଆମ ପ୍ରେରଣାର ଉତ୍ସ ।" '

